# ଲବକୁଶ

(ଯାଉଥିଲେ [illegible] ବନକୁ)



ପ୍ରକାଶକ :

**ସରସ୍ୱତୀ ବିଦ୍ୟା ଭଣ୍ଡାର**

ବାଦାମବାଡ଼ି, କଟକ-୭୫୩୦୦୯

ଫୋନ୍- ୨୩୧୦୮୨୦ (ଦୋକାନ)

ମୂଲ୍ୟ- ପାଞ୍ଚଟଙ୍କା ମାତ୍ର

# ଲବ କୁଶ
## ପ୍ରଥମ ଭାଗ
## (ପୁତ୍ରଙ୍କୁ କୋଳରେ ଘେନି ସୀତାଙ୍କ ଶୋକ)
## (ଫୁଲ ତୋଳା-ବୃତ୍ତେ)

ଶୁଣ ମୋହର ଦୁଃଖି ଧନ
କାହିଁକି ମୋ ଗର୍ଭେ ହେଲ ଜନମ ରେ
ମୋର କରମ ଅଟଇ ହୀନ
ମୋ ଧନ ରେ ।୧।
ମୋର ତ କରମ ଫଟା
ଭୋଗିବାକୁ ଅଛି ଏ ହଟ ହଟା ରେ
କାନ୍ଦି କାନ୍ଦି ଯାଏ ମୋ ଦିନଟା
ମୋ ଧନ ରେ ।୨।
ତୁମେ ଯେ ବେନି କୁମର
ଶୁଆଇଛି ମୁହିଁ ପାରି ପତର ରେ
ଦେଖି ଛାତି ଫାଟିଯାଏ ମୋର
ମୋ ଧନ ରେ ।୩।
ଅଯୋଧ୍ୟା ପୁରେ ଜନମ
ହୋଇଥାନ୍ତ ଯେବେ ଦୁଃଖିନୀ ଧନ ରେ
କେତେ ଉତ୍ସବ କରନ୍ତେ ରାମ
ମୋ ଧନ ରେ ।୪।
ଶୁଅନ୍ତ ଯେଉଁ ଭୁବନେ
ମହକନ୍ତା ଘର ଗନ୍ଧ ଚନ୍ଦନ ରେ
ଘେରି ରହିଥାନ୍ତେ ଦାସୀଗଣେ
ମୋ ଧନ ରେ ।୫।
ତୁମଙ୍କୁ ଦେଖି ଶ୍ରୀରାମ
ହୋଇଣ ଅତ୍ୟନ୍ତ ହରଷ ମନ ରେ

ଦୁଃଖୀ ଦରିଦ୍ରଙ୍କୁ ଦ୍ୟନ୍ତେ ଦାନ
ମୋ ଧନ ରେ ।୬।
ଉତ୍ସବ ଲାଗନ୍ତା କେତେ
ବାଜନ୍ତା ବିବିଧ ବାଜଣା ନଯତେ ରେ
ମାତିଥାନ୍ତେ ନୃତ୍ୟକାରୀ ନୃତ୍ୟେ
ମୋ ଧନ ରେ ।୭।
ସୁନା ରୂପାରେ ଯେ ଦୋଳି
ଝୁଲୁଥାନ୍ତ ମୋର ନେତ୍ର ଯୁଗଳି ରେ
ନିଜେ ଝୁଲାଉଥାନ୍ତି ସେ ଦୋଳି
ମୋ ଧନ ରେ ।୮।
ଉଠିଆରୀ ଷଷ୍ଠି ଘର
ସେ ଦିନ ଆନନ୍ଦ ହୋନ୍ତା ଅପାର ରେ
ଷଷ୍ଠି କଲା ଏମନ୍ତ ବିଚାର
ମୋ ଧନ ରେ ।୯।
ହୋଇଥିଲି ରାଜରାଣୀ
ଏବେ ହେଲି ଦାଣ୍ଡର ଭିକାରୁଣୀ ରେ
ନିଶିଦିନ ବହେ ନେତ୍ରୁ ପାଣି
ମୋ ଧନ ରେ ।୧୦।
ନିଜ କରମକୁ ଠକି
ଦିନ କାଟୁଅଛି ଏଥେ ରହିକି ରେ
ଆଶ୍ରା ଏବେ ମହର୍ଷି ବାଲ୍ମୀକି
ମୋ ଧନ ରେ ।୧୧।
ମୋତେ ଭାବିଣ ଅସତୀ
ତୁମ ପିତା ତେଜ୍ୟା କରି ଅଛନ୍ତି ରେ
ଅପବାଦକୁ କରିଣ ଭୀତି
ମୋ ଧନ ରେ ।୧୨।

ମୋ ପ୍ରତି ହୋଇ ନିଷ୍ଠୁର
ପଠାଇଲେ ମୋତେ ଘୋର ବନର ରେ
କହେ ବାକର ଯୋଡ଼ିଣ କର
ମୋ ଧନ ରେ ।୧୩।

- 0 -

## ବାଲ୍ମୀକି ମୁନିଙ୍କ ପ୍ରବୋଧନା

### (କୀର୍ତ୍ତନ ସ୍ୱର)

କାନ୍ଦ ନାହିଁ କାନ୍ଦ ନାହିଁ କାନ୍ଦନାହିଁ ସୀତା ଗୋ
ରାମଙ୍କର ଦୋଷନାହିଁ ବିଧାତାର ଛନ୍ଦ ଗୋ
ନ କାନ୍ଦଲୋ ଝିଅ
ପୁତ୍ର ମୁଖ ଦେଖି ସୁଖି ହୁଅ ।
ଅଳ୍ପଦିନେ ତୋର ଦୁଃଖ ଦୁର୍ଦ୍ଦଶା ମେଣ୍ଟିବ ଗୋ
ତୋର ପୁତ୍ରଙ୍କର ଯଶ ଜଗତ ଘୋଷିବ ଗୋ
ହେବେ ଦିଗବିଜୟୀ
ଧନୁ ବିଦ୍ୟା ମୁଁ ଦେବି ଶିଖାଇ ।
ଯୁଦ୍ଧରେ ଜଗତଜିତା ହେବ ତୋର ସୁତ ଗୋ
ମହାକ୍ଷତ୍ରୀ ବୋଲି ନାମ ହୋଇବ ବିଖ୍ୟାତ ଗୋ
ରାମ ସଙ୍ଗେ ଦିନେ
ଭେଟ ହେବ ଏହି ତପୋବନେ ।
ତୁ ତ ବିଷ୍ଣୁ ପାଟରାଣୀ ମର୍ତ୍ତେ ତୋ ଜନମ ଗୋ
ଧନ୍ୟ ଧନ୍ୟ ଲବକୁଶ ତୋର ଏ ନନ୍ଦନ ଗୋ
ତୁ ତ ସୁଲକ୍ଷଣୀ ।
ଲବ କୁଶ କୋଳେ ଅଙ୍କୁ ଘେନି
ଆନନ୍ଦ ମନେ ତୋ ପୁତ୍ରକୁ କୋଳେ ଘେନି ରେ
ଅସ୍ଥିର ହେଉଛନ୍ତି କରାଅ ଦୁଗ୍ଧ ପାନ ଗୋ
କହଇ ବାକର
ପୁତ୍ରଙ୍କୁ ଦେଖିଣ ଖୁସି ହୁଅ ଅପାର ।

# ଦ୍ୱିତୀୟ ଭାଗ

**ରାମ-** କିମ୍ପା ବାନ୍ଧିଛ ଅଶ୍ୱ ଆରେ ବାଳୁତ ଶିଷ୍ୟ
ଛାଡ଼ିଦିଅ ତୁମ୍ଭ ପ୍ରାଣେ ଥିଲେରେ ଆଶ ।
ନ ଛାଡ଼ିଲେ ତୁମ୍ଭେ ତ ଆଜି ଯମ ପୁର ତ
ଦେଖିବ ନିଶ୍ଚୟ ଜାଣ ଆରେ ବାଳୁତ ।
ହସି ବୋଲଇ କୁଶ ଆମ୍ଭେ କ୍ଷେତ୍ରୀୟ ବଂଶ
ମରଣ ଛାରକୁ ଆମ୍ଭେ ନ ଡରୁ ଲେଶ ।

**ଲବ-** ମରିଲେ ସ୍ୱର୍ଗଯିବୁ ମାରିଲେ ଯଶ ନେବୁ
· ସନ୍ମୁଖ ରଣରେ କ୍ଷତ୍ରୀ ଧର୍ମ ପାଳିବୁ ।

**ରାମ-** ବଳେ ଅଶ୍ୱ ଧରି ମୋର ଭାଇଙ୍କୁ ମାରି
ଜାଣୁ ଜାଣୁ ମରଣକୁ ଅଛ ଯେ ବରି ।
ଆଜି ନିଶ୍ଚେ ରଣରେ ତୁମ୍ଭଙ୍କୁ ତ ପ୍ରାଣରେ
ହତ କରିବି କୋଦଣ୍ଡ କାଣ୍ଡ ମୁନରେ ।

**ଲବ-** ନିଜ ମୁଖେ ପ୍ରଶଂସା କରନାରେ ନୃଶଂସା
ଧରି ଅସ୍ତ୍ର କର ଯୁଦ୍ଧ ଆସି ସହସା ।

**କୁଶ-** ଯେବେ ତୋ ବୀରପଣ ଜଣାଯିବଟି ଜାଣ
ରଣ ନକରି ପ୍ରଶଂସାରେ କି କାରଣ ।

**ରାମ-** ଶିଶୁ ସଙ୍ଗେ ସମର କଲେ ନିନ୍ଦା ଅପାର
ବୁଝାଇ କହୁଛି ଅଶ୍ୱ ଛାଡ଼ ମୋହର ।
ତୁମ୍ଭେ ସହଜେ ପିଲା କାହୁଁ ସାହସ ହେଲା
ଅଶ୍ୱ ବାନ୍ଧି ଦୁଇ ଭାଇ ହୋଇଛ ଛିଡ଼ା ।

**ଲବ-** ଶିଶୁ ବୋଲି ନ ମଣ ଆମ୍ଭେ ତୋ କାଳ ଜାଣ
ଅଟୁ ଆମ୍ଭେ ଶିଶୁ ଆମ୍ଭ ବାଣଟି ଟାଣ ।

**କୁଶ-** ରଣ କଲେ ଜାଣିବୁ ମନରେ ତୁ ଗୁଣିବୁ
ଶିଶୁ ପିଲା ପରାକ୍ରମ ସତ ମଣିବୁ ।

ରାମ- ଦେଖି ତୁମ୍ଭ ବଦନ କରଇ ଅନୁମାନ
ହେବ କି ତୁମ୍ଭେରେ ସୀତା ସତୀ ନନ୍ଦନ
ଦେଖି ତୁମ୍ଭ ମୁରତି ହୃଦ ହୁଏ କରତି
ମୋ ସଙ୍ଗେ ଯୁଦ୍ଧ କଲେ ନ ଯିବ ବିରତି ।
ତେଣୁ କରଇ ମନା ରଣେ ମନ ବଳାନା
ପତଙ୍ଗ ହୋଇ ରଣ ଅନଳେ ପଡ଼ନା ।
ଲବ- କଥା କହି ଛଳାନା ବିନା ଯୁଦ୍ଧେ ପଳାନା
ପିଲା ଦେଖି ନାନା କଥାରେ ତୁ ଭୁଲାନା ।
କୁଶ- କ୍ରୋଧ ଅଗ୍ନି ବଢ଼ାନା ମୃତ୍ୟୁବାଟ କଢ଼ାନା
ଏକବାଣେ ସଞ୍ଜିବନୀ ପୁର ଦେଖନା ।
ରାମ- ତୁମ୍ଭ ମାତାଙ୍କୁ ଆଗେ ପଚାରି ଆସ ବେଗେ
ଶ୍ରୀରାମଚନ୍ଦ୍ର ନାମ କହିବ ତାଙ୍କ ଆଗେ ।
ଦେଲେ ସେ ଅନୁମତି ଆରେ କୋମଳ ମତି
ଯୁଦ୍ଧ କରିବ ମୋ ସଙ୍ଗେ ତେଜିଣ ଭୀତି ।
ଲବ- କ୍ଷତ୍ରୀ ମୁଖେ ଏ କଥା ସାଜେନାରେ ଜାଣିଥା
ପିଲା ଦେଖି ଭୁଲାଉଛ ଆମ୍ଭଙ୍କୁ ବୃଥା ।
କୁଶ- ଧିକ ଧିକ ତୋ ମାତା ଧିକ ଧିକ ତୋ ପିତା
ଧିକ ତୋ କୋଦଣ୍ଡ ଶର ଧିକ ତୋ ଭ୍ରାତା ।
ରାମ- କହ ଯେତେ ଛଳାଇ ମୋର ହୃଦ ଜଳାଇ
କିନ୍ତୁ ତୁମ ସଙ୍ଗେ ଯୁଦ୍ଧ କରିବି ନାହିଁ ।
ମନ ସନ୍ଦେହ ମୋର ହେଉଛିରେ କୁମର
ହେବ ପରା ତୁମ୍ଭେ ସୀତା ସତୀ କୁମର ।
କୁଶ- ଯେବେ କ୍ଷତ୍ରୀ ସମ୍ଭୁତ ହୋଇଥାଉ ତୁହି ତ
ସମ୍ମୁଖ ରଣେରେ ହୁଅନ୍ତୁ କି ପଶ୍ଚାତ ।
ଜୀବନେ ଥିଲେ ଡର ବେଗେ ପଳା ପାମର
ବୃଥା ବାକ୍ୟରେ ତୁ ନ ଦେଖାଅ ବାତର ।

ରାମ- ଯେତେ କହେ ବୁଝାଇ ତୁମ୍ଭଙ୍କୁ ସମଝାଇ
ବଢ଼ି ବଢ଼ି କହୁଅଛ ହେ ବେନି ଭାଇ ।
ହେ ଦଶଦିଗ ପାଳ ଇନ୍ଦ୍ର ଚନ୍ଦ୍ର କୁବେର
ସାକ୍ଷୀଥାଅ ଶିଶୁ ସଙ୍ଗେ କଲି ସମର ।
ମୋର ଦୋଷ ତ ନାହିଁ ମୋତେ କହ ଛଳାଇ
ମୋ ଧନୁ କାଣ୍ଡର ବଳ ଜାଣ ତ ନାହିଁ ।
ବେଙ୍ଗୁ ବେଳ କୋପିଲେ ହସ୍ତେ ଶର ଧଇଲେ
କୋଦଣ୍ଡ ଗୁଣରେ ତାହା ନେଇ ଯୋଖିଲେ ।
ଯେତେ କହେ ବୁଝାଇ ତୁମ୍ଭେ ବୁଝିଲ ନାହିଁ
ସମ୍ଭାଳ ଏଥର ବାଣ କାତର ନୋହି ।
ରାମ ଏହା କହିଣ କୋପେ ବିନ୍ଧିଲେ ବାଣ
ଲବ କୁଶ ମୁଖେ ଶର ଦେଲା ଚୁମ୍ବନ ।
ରାମଙ୍କ ଶର ଦେଖି କୁଶ ବୁଜଇ ଆଖି
ତୃଣୀରୁ ଶର ଆଣି ମାରଇ ଯୋଖି ।
ସେହି ଶର ଯେ ଗଲା ଶ୍ରୀରାମ ପାଦ ଛୁଇଁଲା
ବାହୁଡ଼ି ଆସିଣ କୁଶ ତୃଣେ ପଶିଲା ।
ରାମ ଦେଖି ଚକିତ ମନେ ହେଲେ ଭାବିତ
ହସ୍ତୁ ଧନୁଶର ତଳେ ଖସି ଗଲାତ ।
ଲବ- ଯୁଦ୍ଧେ ହୋଇ ବାହାର ମୋର ଶର ସମ୍ଭାଳ
ନିସ୍ତେଜ ହେଲେ କି ଛାଡ଼ିବିରେ ପାମର ।
ଏହା ରାମ ଶୁଣିଲେ କୋଦଣ୍ଡ ଟେକି ଧଇଲେ
ଏକାଥରେ ସାତବାଣ ସେହୁ ବିନ୍ଧିଲେ ।
କାଣ୍ଡେ କୁଶ ମାରିଣ ତାକୁ କାଟି ଦେଇଣ
ଏକାକାଣ୍ଡେ ରାମପରେ ବିନ୍ଧିଲେ ବାଣ ।
ସେହି କାଣ୍ଡ ଯେ ଗଲା ରାମ ପରେ ପଡ଼ିଲା
ଦେହୁ ତାଙ୍କର ରକତ ଧାର ବୋହିଲା ।

ରାଗେ କରି ହୁଙ୍କାର ରାମ ବିନ୍ଧିଲେ ବାଣ
ଲବ କାଟି ପକାଇଲା ତାହା ସତ୍ୱର ।

ଲବ- ଦେଖି ପେଶିଲେ ଶର ନାମ ମୋହନା ଶର
ଭୂମିରେ ଢଳି ପଡ଼ିଲେ ସେ ରଘୁବୀର ।
ସୀତା ପତିଙ୍କୁ ଧ୍ୟାୟୀ ବାକର ଯେ ଲେଖଇ
ଦୋଷ ଥିଲେ କ୍ଷମା ଦେବ ଜଗତ ସାଇଁ ।

- 0 -

## ତୃତୀୟ ଭାଗ

ସୀତା- ଯାଇଥିଲ ଧନ ବନକୁ ଫୁଲ ତୋଳିବା ପାଇଁ
ସୁବର୍ଣ୍ଣ ମୁକୁଟ କାହାର ଆଣି ଅଛ ଛଡ଼ାଇ ।
କାହା ସଙ୍ଗେ ରଣ କରିଛ ଶୁଖିଅଛି ବଦନ
କ୍ରୋଧରେ ତୁମ୍ଭର ନୟନ ଦିଶୁଛି ରଙ୍ଗବର୍ଣ୍ଣ ।

ଲବ- ଶୁଣ ଜନନୀ ତୋହର ଅଶେଷ ପୁଣ୍ୟବଳେ
ଯୁଦ୍ଧରେ ଜଗତ ଜିତା ହେବ ତୋର ସୁତ ଗୋ ।
ଘୋଡ଼ା ସହିତରେ କପିକୁ ଦେଖ ଆଣିଛୁ ବାନ୍ଧି
କ୍ଷତ୍ରୀୟ ମର୍ଯ୍ୟାଦା ରଖିବୁ ରଣେ ଶତ୍ରୁକୁ ବଧି ।

ସୀତା- ଧନରେ ତୁମ୍ଭେତ ବାଳକ ଶତ୍ରୁ କିଏ ତୁମ୍ଭର
କାହାସଙ୍ଗେ ଯୁଦ୍ଧ କରିଛ ମୋତେ କହ ସତ୍ୱର
ପଡ଼ିଗଲା ମୋର ମୁଣ୍ଡରୁ ଦିମ୍ପା ଏ ମଥାମଣି
ସୁବର୍ଣ୍ଣର ଚୂଡ଼ି କାହିଁକି ମଳିନ ଦିଶିଲାଣି ।

ଲବ- ଅଯୋଧ୍ୟାରେ ଘର ତାହାର ନାମ ଶ୍ରୀରାମଚନ୍ଦ୍ର
ରାବଣକୁ ବଧିଣ ସେ କ୍ଷତ୍ରୀ କୁଳ ନରେନ୍ଦ୍ର ।

କୁଶ- ଅଶ୍ୱମେଧ ଯଜ୍ଞ କରିବା ପାଇଁ ଛାଡ଼ିଲେ ଅଶ୍ୱ
ବୀରପତ୍ର ଅଶ୍ୱଶିରେ ବାନ୍ଧିଲେ କେଡ଼େ ସାହାସ ।

ଲବ- ବଳେ ଅଶ୍ୱକୁ ଧରି ପଢ଼ିଲୁ ସେ ପତ୍ରକୁ ଫିଟାଇ
କ୍ଷତ୍ରୀ ହୋଇ ଯଜ୍ଞ ଅଶ୍ୱକୁ ଯଦି ଧରିବ କେହି ।

ନିଶ୍ଚେ ଯୁଦ୍ଧକରି ତା ପ୍ରାଣ ବଧି ଆଣିବୁ ଅଶ୍ୱ
ପତ୍ର ପଢ଼ି କ୍ରୋଧ ଜନ୍ମିଲା ଆମ୍ଭ ହୃଦେ ଅବଶ୍ୟ ।
କ୍ଷତ୍ରୀ ଧର୍ମ ପାଳିବାକୁ ବଳେ ଅଶ୍ୱ ଧଇଲୁ
ରାମଭାଇ ଶତ୍ରୁଘନକୁ କୌଶଳେ ହତ କଲୁ ।
ଶେଷେ ରାମଚନ୍ଦ୍ର ଆସିଲେ ଏ ମର୍କଟକୁ ଘେନି
ଏକା ଶରେ ତାକୁ ବଧିଲୁ ଶୁଣ ଆଗୋ ଜନନୀ ।

**ସୀତା-** କି କଲରେ ଦୁଃଖି ସଙ୍ଗାଳି ଅଭାଗିନୀ ଜୀବନ
ଅକାରଣେ ତୁମ୍ଭ ପିତାଙ୍କୁ ରଣେ କଲ ନିଧନ ।
ଜନ୍ମିଥିଲ କିରେ ମୋ କୋଳେ ପିତା ବଧିବା ପାଇଁ
ଅନାଥିନୀ କରାଇଲରେ ଛନ୍ଦ ପାଞ୍ଚବ ଦି'ଭାଇ ।
ରାଣ୍ଡ କରି ଦାଣ୍ଡେ ବୁଲାଇବାକୁ କଲ ଏ କାଣ୍ଡ
ଏ ଦୁର୍ବୁଦ୍ଧି କିଏ ଦେଲାରେ ଶୁଣି ଭ୍ରମୁଛି ମୁଣ୍ଡ ।
ପିତାଙ୍କୁ ବଧିଣ ମୋ ପାଖେ ଦେଖାଉଛରେ ମୁଖ
ପିତୃହନ୍ତା କୁଳ ଅଙ୍ଗାର ମୋତେ ଦେଉଛ ଦୁଃଖ ।

**ଲବ, କୁଶ-** କାହିଁକି ଜନନୀ ଆମ୍ଭଙ୍କୁ କରୁଅଛ ଧିକାର
ଏ କାର୍ଯ୍ୟରେ ତିଳେ ମାତ୍ରକେ ଦୋଷ ନାହିଁ ଆମ୍ଭର ।
ଜାଣିଥାନ୍ତୁ ଯେବେ ଆଗରୁ ଜନ୍ମକର୍ତ୍ତା ପିତା ସେ
ଯୁଦ୍ଧକରି ବଧି ନଥାନ୍ତୁ ଯେଣୁ ତୁମ୍ଭ ଭର୍ତ୍ତା ସେ ।
ତୁମ୍ଭେ ଆମ୍ଭ ମାତା ଏକଥା ସିନା ଅଛୁ ତ ଜାଣି
ପିତା କିଏ ତୁମ୍ଭ ମୁଖରୁ ଦିନେ ନଥିଲୁ ଶୁଣି ।
ବନେ ଜନ୍ମି ବନେ ରହିଲୁ ବନ ଫଳକୁ ଭକ୍ଷି
ଜାଣିଥିଲେ ମାରିଥାନ୍ତୁ କି ପିତାଙ୍କୁ ଶର ଯୋଖି ।

**ସୀତା-** ସରିଗଲାଣି ତ ଆଜିଠୁ ସବୁ ଆଶା ଭରସା
ଆଜିଠୁ ହୋଇବ ଧନରେ ତୁମ୍ଭେ ଭଗାରୀ ହସା ।
ପିତୃହନ୍ତା କୁଳ ଅଙ୍ଗାର ନମିଳିବଟି ରାହା
ଆହା ବୋଲିବାକୁ ଧନରେ କେହି ନ[illegible] ସାହା ।

ଯାହା ହେବାରତ ହେଲାଣି ଚାଲ ରଣ ସ୍ଥାନକୁ
ନେତ୍ର ଭରି ଥରେ ଦେଖିବି ମୋର ପ୍ରାଣନାଥଙ୍କୁ ।
ମୌନ ହୋଇ ଠିଆ ହୋଇଛୁ କିମ୍ପା ରେ ହନୁମନ୍ତ
ତୋର ବଳ ପରାକ୍ରମ କି ସବୁ ହୋଇଲା ଲୁପ୍ତ ।
ଯାତ ସମୁଦ୍ରକୁ ଡେଇଁଣ ଯାଇଥିଲୁ ତୁ ଲଙ୍କା ।
ଆଜି ଏ ବାଳକ ତୋ ବନ୍ଧ କରି ଦେଲେକି ବଙ୍କା ।
ବନ୍ଧା ହୋଇ କରୁ କ୍ରନ୍ଦନରେ ପବନ ନନ୍ଦନ
ତୁହି ଥାଉ ଥାଉ ମୋ ପତି ହୋଇଛନ୍ତି ନିଧନ ।

ହନୁ- କ୍ଷତ୍ରୀ କୁଳ ଉଜ୍ଜଳମଣି ମୋ ପ୍ରଭୁ ଶ୍ରୀରାମ
ଶିଶୁ ସଙ୍ଗେ କରି ସମର ପଡ଼ିଛନ୍ତି ମୋହେଣ ।
ଯୁଦ୍ଧ କରିବାକୁ ଚାଲିଲା ନାହିଁ ମୋ ହସ୍ତପଦ
ସମର ଦେଖିଣ ଏହାଙ୍କ ମୁହିଁ ହେଲି ନିସ୍ତବ୍ଧ ।

ସୀତା- ଚାଲ ମୋତେ ବେଗେ ଘେନିଣ ସେ ସମର ଭୂଇଁକି ।
ଚାଲ ଲବକୁଶ ଦେଖିବା ତାଲ ରଘୁସାଇଁକି ।
କାନ୍ଦି କାନ୍ଦି ସୀତା ପ୍ରବେଶ ହେଲେ ସମର ସ୍ଥାନେ
ରକ୍ତ କଳେବର ଦେଖିଲେ ଅଶ୍ରୁପୂର୍ଣ୍ଣ ନୟନେ ।
ହା ନାଥ ହା ନାଥ କହିଣ କାନ୍ଦି ପିଟିଲେ ମଥା
ଲବ କୁଶ ବୁଝାଉଛନ୍ତି ଆଉ ନ କାନ୍ଦ ମାତା ।
ଯାଅରେ ଦୁଃଖିନୀ ନୟନ ଅଯୋଧ୍ୟାକୁ ବହନ
ସୁଖେ ଅଯୋଧ୍ୟାରେ ରହିଣ ତୁମ୍ଭେ ହେବ ରାଜନ ।
ପିତାଙ୍କୁ ନିଧନ କରିଲ ସବୁ ତୁଟିଲା ଚିନ୍ତା
କାଳ କାଳକୁରେ ବାଳଙ୍କ ଲେଖା ରହିଲା କଥା ।
ଯାହା ଦେଖିଲରେ ଏତିକି ଆଉ ଦେଖିବ ନାହିଁ
ଅଗ୍ନିରେ ଏ ପ୍ରାଣ ଝାସିବି ସତ କହୁଛି ମୁହିଁ ।
ମୋ ପାଇଁ କାନ୍ଦିବ ନାହିଁରେ ଶୁଣ ମୋ ଗଳାମାଳି ।

ଲବ, କୁଶ- କାନ୍ଦି କାନ୍ଦି କହନ୍ତି ଶୁଣ ଶୁଣ ଜନନୀ
ଅଯୋଧ୍ୟାରେ ରାଜା ହୋଇଲେ ପାଇବୁ କି ସମ୍ମାନ ।
ତୁମ୍ଭେ ଯେବେ ଅଗ୍ନି ମଧ୍ୟରେ ଜଳି ପୋଡ଼ି ମରିବ
ତୁମ୍ଭ ସଙ୍ଗେ ଆମ୍ଭେ ମରିଲେ ସବୁ ଚିନ୍ତା ସରିବ ।

ସୀତା- ଯାଅରେ ପବନ ନନ୍ଦନ ବନୁ ଆଣ ଚନ୍ଦନ
ମାତା ପୁତ୍ର ତିନି ମରିବୁ ଏହି ସତ୍ୟ ବଚନ ।
ଆଜ୍ଞା ପାଇ ହନୁ ଚନ୍ଦନ ବନୁ ଘେନି ଆସିଲା
କାନ୍ଦି କାନ୍ଦି ଚିତା ସଜାଡ଼ି ସେ ବିରସେ ବସିଲା ।
ସୀତା, ଲବ, କୁଶ ଅଗ୍ନିରେ ଝାସ ଦେବାକୁ ଯାନ୍ତେ
ଏହି ସମୟରେ ବାଲ୍ମୀକି ପହଞ୍ଚିଲେ ତ୍ୱରିତେ ।
ନ ପଶ ଅଗ୍ନିରେ ଜାନକୀ ସଙ୍ଗେ ପୁତ୍ରଙ୍କୁ ନେଇ
ଜୀବନ୍ୟାସ ମନ୍ତ୍ର ପଢ଼ିଣ ଦେବି ପତି ଜିଆଇ ।
ଯୁଦ୍ଧ କ୍ଷେତ୍ରେ ଆଜି ହୋଇବ କି ଅପୂର୍ବ ମିଳନ
ପିତା ପୁତ୍ର ଚିହ୍ନା ପଡ଼ିବେ ଆଜି ଆନନ୍ଦ ଦିନ ।
ମୁନି ମନ୍ତ୍ର ପାଠ କରନ୍ତେ ରାମ ଉଠିଲେ ଚେଇଁ
ସେ ବେଳରେ ଯେତେ ଆନନ୍ଦ ମୁଖେ କହି ନୁହଇଁ ।
ହରିବୋଲ ହରିବୋଲ ହେ ହରି ଭକତମାନେ
ହୁଳହୁଳି ଦିଅ ହରଷେ ମାଆ ଭଉଣୀମାନେ ।
ସୀତା ରାମ ଭଜି ପାରିଲେ ଭବୁ ହେବ ଉଦ୍ଧାର
ଦୋଷ ଥିଲେ ଦେବ ଚଳାଇ କହେ ଦୀନ ବାକର ।

## ପୁରାଣ ବିଭାଗ

- ସାବିତ୍ରୀ ପୁରାଣ
- ମା' ତାରିଣୀ ପୁରାଣ
- ମଙ୍ଗଳା ପୁରାଣ
- ପାର୍ବତୀ ପୁରାଣ
- ଟୀକା ତୁଳସୀପୁରାଣ
- ଟୀକା ନୃସିଂହ ପୁରାଣ
- ଖଣ୍ଡିକିଆ ଟୀକା ଭାଗବତ
- ଦାନବୀର ହରିଶ୍ଚନ୍ଦ୍ର ପୁରାଣ
- ଟୀକା ବ୍ରହ୍ମବୈବର୍ତ୍ତ ପୁରାଣ
- ଟୀକା ଚିତ୍ରବଧ ପୁରାଣ
- କାର୍ତ୍ତିକ ପୁରାଣ
- ସଂକ୍ଷିପ୍ତ ଅଷ୍ଟାଦଶ ପୁରାଣ

## ନାଟକ ବିଭାଗ

- ବାପା ତୁମେ ହାରିଗଲ
- ନଈ ସେପାରି ଗାଁ
- ପଣତ କାନିରେ ରଖିଛି ବାନ୍ଧି
- ବାତ୍ତୁଅପାଣି
- ସପନ ସରିବ ପାହିଲା ରାତି
- ଆଜି ଗୁରୁବାର ମୁଣ୍ଡ ନୁଆଁଇଲି
- ଅଧା ରହିଗଲା ରାଧା ବାହାଘର
- ତୁଅ ବୋଉର ମୁଁ ଶେଜ୍ଜା ଦିଅର
- କାଳୀ ତୁଆବୋଉ
- ବଡ଼ ଦାଣ୍ଡ ପୁରୀ
- ଦେଦୀକୁ ସୁନ୍ଦର ବଉଳପାଟ
- ହୁଳହୁଳି ଦିଅ ରାଜରାଣୀ
- ବାସନ୍ତୀ କଲୋନୀ ରାଉରକେଲା

## ଅନ୍ୟାନ୍ୟ ଭିନ୍ନ ପୁସ୍ତକ

- ବାସ୍ତୁରତ୍ନ
- ଜନ୍ମ ତାରିଖରୁ ଭବିଷ୍ୟତ ଜାଣନ୍ତୁ
- ରାଶିରୁ ଭବିଷ୍ୟତ ଜାଣନ୍ତୁ
- ମହା ପୁରୁଷଙ୍କ ଅମୃତବାଣୀ
- ପ୍ରକୃତିର ଦାନ
- ମୁଁ ବଇଦ
- ପୁରୋହିତ ଶ୍ରାଦ୍ଧ ପଦ୍ଧତି
- ଶିଳ୍ପ ଶାସ୍ତ୍ର
- ସର୍ବଦେବାଦେବୀ ପୂଜାପଦ୍ଧତି
- କ୍ଷେତ୍ରପାଳ
- ଗୁପ୍ତ ରୋଗ ଚିକିତ୍ସା
- ତୁଳସୀ ମାହାତ୍ମ୍ୟ

## ଅରକ୍ଷିତଦାସଙ୍କ ଗ୍ରନ୍ଥାବଳୀ ମାଳିକା

- ପ୍ରକୃତିର ତାଣ୍ଡବଲୀଳା
- ବ୍ରହ୍ମାଣ୍ଡ କଳ୍ପ
- ବାଲ୍ମିକୀ କଳ୍ପ
- ଅଚ୍ୟୁତଠାର ହାଣ୍ଡିଆ ଗାର
- ତେର କଳ୍ପରେ ଦେହୁରୀଲୀଳା
- ହାଡ଼ିଦାସଙ୍କ ମାଳିକାତତ୍ତ୍ୱ
- ଅଚ୍ୟୁତମାଳିକାର ଗହନ କଥା
- ଯୋଗମାୟା ଜାଗୃତି ମାଳିକା
- ଅଶୋକ ପାତ୍ରଙ୍କ ମାଳିକା

ଭୟଙ୍କର ଭବିଷ୍ୟତବାଣୀ ଗୌରାଙ୍ଗ ଅଧିକାରୀଙ୍କ

- ଆଗତ ଭବିଷ୍ୟତ ଗ୍ରନ୍ଥ

## ଶିକ୍ଷା ଓ ପାଠ୍ୟୋପଯୋଗୀ ପୁସ୍ତକ

- ସରସ୍ୱତୀ ମୋ ଛବିବହି
- ସରସ୍ୱତୀ ମଧୁ ବର୍ଣ୍ଣବୋଧ
- ସରସ୍ୱତୀ ଇଂରାଜୀ ଶିକ୍ଷା
- ସରସ୍ୱତୀ ହିନ୍ଦୀ ଶିକ୍ଷା
- ସରସ୍ୱତୀ ଟେକ୍ସ ଚାର୍ଟ
- ସରସ୍ୱତୀ ପିଲାଙ୍କ ଗଢନା
- Saraswati Essays & Letters (For M.E. School)
- Progressive Essays & Letters (For High School)